# ଦରିଆର ଗୁହାରୀ

ଚିତ୍ତରଞ୍ଜନ ଦାସ
ରବିନାରାୟଣ ରଥ



ନବସାକ୍ଷର ସାହିତ୍ୟମାଳା

# ଦରିଆର ଗୁହାରୀ

ଚିତ୍ତରଞ୍ଜନ ଦାସ

ରବିନାରାୟଣ ରଥ

ଅଳଙ୍କରଣ

ପ୍ରବୀଣ ବଡ଼ିଆ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# 1

ରାମୁ ରଘୁ ବେହେରାର ବଡ଼ପୁଅ । ଘରେ ଦୁଇ ଭାଇ ଓ ସାନ ଭଉଣୀ । ତାକୁ ଯେତେବେଳେ ଦଶ ବରଷ ହୋଇଥିଲା ତା' ମା'ର କାଳ ହୋଇଯାଇଛି ।

ଚିଲିକା ହ୍ରଦ କୂଳରେ ତା' ଗାଁ ମୋଟୋ । ମାଛ ମାରି ପେଟ ପୋଷିବା ତାଙ୍କର ବେଉଷା ।

ରଘୁ ବେହେରା ନାଆଁ ଆଖପାଖ ଦଶକୋଶ ଗାଁରେ ଡାକ । ଚିଲିକା ଆଉ ସମୁଦ୍ରରେ ମାଛମାରିବାରେ ସେ ଜଣାଶୁଣା । ତା ପାଖରେ ନାଆ, ବେକ୍‌ଟୀ ଜାଲ, ପାଚୁଆ ଜାଲ, ବୋରୋଗ ଜାଲ, ପୁଣି କଙ୍କଡ଼ା ଧରିବା ପଇଁ ନାଳୀ ଜାଲ ସବୁ ଅଛି ।

ଦଶ ବରଷ ବେଳୁ ରାମୁ ବାପ ସହିତ ନାଆରେ ଯାଏ । ଚିଲିକା ଭିତରର ଯେତେ ଗାଁ ଓ ଟାପୁ ସବୁ ରାମୁର ଜଣାଶୁଣା ।

କେଉଁ ମାସରେ କେଉଁ ଯାଗାରେ କେଉଁ ମାଛ ମିଳିବ ରଘୁ ତା' ପୁଅକୁ ବତାଇ ଦିଏ । କେଉଁଠି ଯଦି ଦଳ ପଚାହୋଇ ଭରଭରିଆ ଦିଶୁଛି ରଘୁ ତା' ପୁଅକୁ ଦେଖାଇ ଦିଏ । କହେ, ''ଏଠି ମାଛ ମିଳିବନି । ଦଳ ପଚିଗଲେ ସେଥିରୁ ଗନ୍ଧ ବାହାରେ । ସେ ଗନ୍ଧରେ ମାଛ ରହେନି ।'' ଦିନେ ଦିନେ ରାମୁ ଦେଖେ ଚିଲିକା ଉପରେ ମଟର ବୋଟ । ଫଟ୍ ଫଟ୍ ଶବ୍ଦ କରି ପାଣିକୁ ଦୁଇଫାଳ କରି ଚିରିଦେଇ ସାରିକରି ଚାଲିଯାଉଛି । ସେଇ ଫଟଫଟିଆ ନାଆରେ ବସିବାକୁ ରାମୁର ମନେହୁଏ ।

ରଘୁ ପୁଅର ମନକଥା ବୁଝିପାରେ । ସେ କହେ, ଚିଲିକା ଭଳିଆ ଯାଗା

କୋଉଠି ନାହିଁ । କେତେ ରାଇଜରୁ ଦେଖିବାକୁ ଲୋକେ ଆସନ୍ତି । ମୋଟର ବୋଟ୍‌ରେ ବସି ଘଡ଼ିକ ଭିତରେ ସବୁ ବୁଲି ଆସନ୍ତି । ଆମେ ତ ନିଇତି ଏଠି ବୁଲୁଛେ । ଏଥିରେ ବସିବା ଆମର କି ଲୋଡ଼ା ?



# 2

ରାମୁକୁ ବାଇଶି ପୁରି ତେଇଶ ଚାଲିଲା । ରଘୁ ଭାବିଲା, ପୁଅକୁ ହାତକୁ ଦୁଇହାତ କରିଦେଲେ ଘରକୁ ବୋହୂଟିଏ ଆସିବ । ରାମୁ କିନ୍ତୁ ରାଜି ହେଲାନି । କହିଲା, "ଏତେ ବେଇଗି କାହିଁକି ?"

ଆଗ ସେ ବହୁତ କମେଇବ । ନିଜ କମେଇରେ ଗୋଟେ ଫଟଫଟିଆ ନାଆ କିଣିବ । ସେଥିରେ ବସି ସମୁଦ୍ର ଭିତରକୁ ଯିବ । ବହୁତ ମାଛ ମାରିବ । ତେବେ ଯାଇ ବାହାହେଲେ ଘର ଖୁସିରେ ଚଳିବ ।

ଆଜିକାଲି ଚିଲିକା ପୋତି ହୋଇଗଲାଣି । ଚାରିଆଡ଼େ ଖାଲି ଦଳ ଆଉ ପଙ୍କ । ଠାଏ ଠାଏ ଛୋଟ ଡଙ୍ଗା ବି ଚାଲି ପାରୁନି । ମୁହାଣ ବାଟେ ବେଶି ପାଣି ଆସୁନି । ସେ ବାଟରେ ସମୁଦ୍ରରୁ ବେକ୍‌ଟୀ, ଖୁରାଣ୍ଟି ଆଉ ସାହାଳ ମାଛ ଚିଲିକାରେ ପଶୁଥିଲେ । ସେଗୁଡ଼ାକ ଏବେ ଢ଼େର କମିଗଲେଣି । ପୁଣି ସମୁଦ୍ରପାଣି ଅଭାବ ହେବାରୁ ମାଛଗୁଡ଼ାକ ଭଲ ବଢ଼ୁନାହାନ୍ତି । ମାଛ ମାରିବା ଲୋକ ବଢ଼ିଲେ । ଜାଲ ଓ ନାଆ ବଢ଼ିଲା । ମାଛ ଯାଆଁଳ ଆଉ ମାଛ ମଞ୍ଜି ସବୁ ବିକଳିଆଙ୍କ ପରି ସମସ୍ତେ ଧରିନେଲେ । କଙ୍କଡ଼ା ଚିଙ୍ଗୁଡ଼ିଙ୍କ କଥା ବି ସେମିତି । ଆଗ ଯେମିତି ପଡ଼ୁଥିଲେ ଏବେ ଆଉ କାହିଁ ।

ସେଥିପାଇଁ ରାମୁ ଚିଲିକା ଛାଡ଼ି ସମୁଦ୍ରରେ ପାଲ ଟାଣିବାକୁ ମନକଲା । ଚିଲିକାଠାରୁ ସମୁଦ୍ର ଅନେକ ବଡ଼ । ଉପରେ ଆକାଶ ଆଉ ତଳେ ପାଣି । ପାଣି ତଳେ ଅନେକ ମାଛ ଓ କଙ୍କଡ଼ା ।

ପୁଅର ଆଗ୍ରହ ଦେଖି ରଘୁ ତା' ପାଇଁ ଆଉ ଗୋଟିଏ ନାଆ ଓ ଜାଲ

ଆଣିଦେଲା । ରାମୁ ବେଶ୍ ଦୁଇପଇସା ରୋଜଗାର କଲା । ଘରର ଆୟ ବଢ଼ିଲା ।

ବେଳେବେଳେ ରାମୁ ଆସି ପୁରୀ କୂଳରେ ଲାଗେ । ପୁରୀ ବଜାରରେ ମାଛ ବିକେ ।

ଧୀରେ ଧୀରେ ପୁରୀର ସମୁଦ୍ରକୂଳ ତାକୁ ଖୁବ୍ ଭଲ ଲାଗିଲା । ତାଙ୍କ ଗାଁରେ ଖାଲି ଝାଟିମାଟି ଘର । ସଭିଏଁ କଉପୁନୀ ପିନ୍ଧି ମାଛ ମାରନ୍ତି । ପୁରୀ ସମୁଦ୍ର କୂଳରେ କେତେ ରାଇଜର କେତେ ପ୍ରକାରର ଲୋକ । ରଙ୍ଗ ବେରଙ୍ଗୀ ପୋଷାକ । କେତେ ସୁନ୍ଦର କୋଠାବାଡ଼ି । ତାଳଗଛ ଉଚ୍ଚ ଘର ଗୁଡ଼ାକ । ଚାହିଁଲେ ଠେକା ଖସିପଡ଼ିବ ।

ପୁରୀରେ ଚଳିବା ଦିନଠାରୁ ରାମୁର ନିଜ ଘରକୁ ଯିବାଆସିବା କମିଗଲା । ହପ୍ତାରେ ଦିନେ ଅଧେ ଘରେ ହେଲେ ବାକି ଦିନ ସବୁ



ପୁରୀରେ କଟିଲା । ନୋଳିଆ ସାହିର ରାମାୟା, କରୁଣା, ଆପାୟା, ପୁନେୟାଙ୍କ ସହିତ ନିଜଲୋକପରି ସେ ମିଶିଗଲା । ଏମାନେ ତେଲୁଗୁ ଲୋକ । ହେଲେ ଓଡ଼ିଆ ବି ଜାଣନ୍ତି ।

ସେମାନଙ୍କ ସାହିରେ ବରଡ଼ା ଛପର ଛୋଟ ଛୋଟ ନୁଆଁଣିଆ ଘର । ତାରି ଭିତରେ ମାଛ ରହେ । ଜାଲ ରହେ । ପୁଣି ଛ' ସାତ ଜଣ ମଣିଷ ରହନ୍ତି । ଘର ଚାରିଆଡ଼ ମଇଳା । ଭଲ ପାଣି ଟିକେ ବି ପାଖରେ ନାହିଁ । ପହିଲେ ଅଡୁଆ ଲାଗୁଥିଲା । କିଛିଦିନ ପରେ ଦେହସୁହା ହେଇଗଲା ।

ଆପାୟା ଘରେ ଗପ ଜମେ । ଆପାୟା ବୁଢ଼ା ହେଲାଣି । ଘରେ ବସି ବସି ଜାଲ ବୁଣେ । ଚିରା ଜାଲ ମରାମତି କରେ । ତା'ର ଦୁଇ ଯୁଆନ ପୁଅ ପ୍ରସାଦ ଆଉ ପୁନେୟା । ସେମାନେ ମାଛ ମାରନ୍ତି । ତା' ତିରିଲା ମାଛ ଡିପୁରେ ଦେଇଆସେ । ସେଇ ପଇସା ପତର ହିସାବ ରଖେ ।

ଆପାୟାର ବଢ଼ିଲା ଝିଅ ପାରବତୀ । ବଅସ ଅଠର କି ଉଣିଶି ହବ । ବଡ଼ଭାଇ ବାହାହେଲା ପରେ ସେ ବାହାହବ ବୋଲି ଏଯାଏଁ ଅଭିଆଡ଼ୀ ବସିଛି ।

ତା' ହାତଟା ଖୁବ୍ ପାରିବାର । ଶିପ ଆଉ ଶଙ୍ଖରେ ସେ କେତେ ରକମର ଜିନିଷ ତିଆରି କରେ । ତା' କାମଗୁଡ଼ିକ ରାମୁକୁ ଖୁବ୍ ଭଲଲାଗେ ।

ସେଥର ରାମୁ ଘରକୁ ଫେରିଲାବେଳେ ପାରବତୀ ଶିପ ତିଆରି ଘରଟିଏ ଦେଲା । ବଡ଼ ଯତନରେ ରାମୁ ସେଇଟି ଆଣିଲା । ଘରେ ଭାଇ ଭଉଣୀ ଓ ବାପା ସଭିଏଁ ଖୁସି ହେଲେ । ସେଦିନ ରାତିରେ ରଘୁ କହିଲା, "ଏଥର ନିଜେ କେମିତି ଘର କରିବୁ ସେ କଥା ଭାବ ।"

ରାମୁର ପାରବତୀ ମନେ ପଡ଼ିଲା । ସେ ଚୁପ୍ ରହିଲା ।

ରଘୁ କହିଲା, ''ତୁ ଏମିତି ମଉନ ରହିଲେ ଚଳିବ ନାଇଁ । ବାହାଘର କଥାଟି । ମୋ କଥାତ ଜାଣିଛୁ । ଯୋଉଠି ଜବାବ ଦେବି ସରଗ ଛିଡ଼ି ପଡ଼ିଲେ ବି ସେଥିରୁ ହଟିବିନି । ତୋ ମନକଥା ଜାଣିଲେ ସିନା ମୁଁ ଆଗେଇବି ।''

ଶେଷରେ ରାମୁ ମନକଥା କହିଲା । ସେ ପାରବତୀକୁ ବାହାହେବ ବୋଲି ଭାବିଛି ।

ରଘୁ ବେହେରା ମଥାରେ ଚଡ଼କ ପଡ଼ିଲା । ଏ ବାହାଘର ପୁଣି କେମିତି ହେବ ? ତା' ଜାତିଭାଇ କ'ଣ କହିବେ ? ତା' ପାଇଁ ପୁଣି ଜାତିଆଣ ସଭା ବସିବ ?

ସେଦିନ ବାପ ପୁଅକଥା ବୁଝିଲାନି । ପୁଅ ବି ବାପକଥା ଶୁଣିଲାନି ।

ବାହାଘର କଥାକୁ ନେଇ ପୁଣି ରାତିରେ ବାପପୁଅ ଭିତରେ ଉଛବାଚ ହେଲା । ଦୁହେଁ ରାଗିଲେ । ଦୁହେଁ କାନ୍ଦିଲେ ।

ରାମୁ ଯଦି ପାରବତୀକୁ ଘରକୁ ଆଣେ ତାଙ୍କ ଜାତିଭାଇ ସହିବେନି । ତା' ବାପାକୁ ଅପମାନ କରିବେ ।

ରାତାରାତି ରାମୁ ଘର ଛାଡ଼ିଲା ।

ବାପା, ଭାଇ, ଭଉଣୀ, ନାଆ, ଜାଲ, ଗାଁ ଓ ଚିଲିକା ସବୁ ଛାଡ଼ିଲା ।

# ୩

ଘର ଛାଡ଼ି ରାମୁ ଆପାୟା ଘରେ ପହଞ୍ଚିଲା । ଆପାୟା ରାମୁକୁ ବୁଝେଇଲା । ଘରକୁ ଫେରିଯିବାକୁ କହିଲା । ହେଲେ ରାମୁର ଏକାଜିଦ୍ । ସେ ପାରବତୀକୁ ବାହାହବ । ଆପାୟା ତା ସାଇଭାଇଙ୍କୁ ପଚାରିଲା । ସଭିଏଁ ରାଜିହେଲେ । ଆପାୟାର କୁଡ଼ିଆଘରଠୁ ଅଳପ ଦୂରରେ ବାଲିଉପରେ ଆଉ ଗୋଟିଏ ପତର କୁଡ଼ିଆ ତିଆରି ହେଲା । ତା'ରି ଭିତରେ ରହିଲେ ରାମୁ ଆଉ ପାରବତୀ ।

ଦିନ ଗଡ଼ି ଚାଲିଲା ।

ତିନିଟା ବରଷ ଭିତରେ ରାମୁର ଦୁଇଟି ଝିଅ ହେଲେ । ସେମାନଙ୍କ ନାଁ ରଖିଲା କନକ ଓ କାଳୀ । ସେମାନଙ୍କୁ ପାଇ ରାମୁ ଖୁବ୍ ଖୁସି ।

ରାମୁର ଇଚ୍ଛା ସେ ବହୁତ ରୋଜଗାର କରିବ । ପିଲାଛୁଆଙ୍କୁ ଭଲରେ ରଖିବ । ପିଲାମାନେ ବଡ଼ ମଣିଷ ହେବେ । ଫଟଫଟିଆ ନାଆରେ ଚଢ଼ିବେ ।

ରୋଜଗାର ବଢ଼ାଇବାକୁ ନିଜର ନାଆ ଆଉ ଜାଲଥିବା ଦରକାର । ତେଣୁ ରାମୁ ସାଉକାରଠୁ କରଜ କରି ନାଆ ଆଉ ଜାଲ ଆଣିଲା ।

ଏଥର ଯେଉଁ ମାଛ ଧରିଲା ସେଥିରୁ ଅଧେ ମାଛ ସାଉକାର ନିଏ । ବାକି ଅଧକ ବିକି ସେ ତା' ଘର ଚଳାଏ ।

ନୋଳିଆ ସାହିରେ ଏବେ ଲୋକ ବଢ଼ିଲେଣି । ଲୋକ ସିନା ବଢ଼ୁଛନ୍ତି ଯାଗାତ ଆଉ ବଢ଼ୁନି । ଘର ଚାରିପାଖର ବାଲି ପଡ଼ିଆ ଏବେ ମଇଳାରେ ଭରି ଗଲାଣି । ସହରର ମଇଳା ପାଣିଗୁଡ଼ାକ ନଈପରି

ସମୁଦ୍ରରେ ମିଶିଲାଣି ।

ଦୁଇ ଝିଅଙ୍କୁ ରାମୁ ଖୁବ୍ ଭଲପାଏ । ବାପକୁ ଦେଖିବାକୁ ସେମାନେ ବି ପାଗଳ ପରି ହୁଅନ୍ତି । ହେଲେ ଆଜିକାଲି ତାଙ୍କ ଦେହ ପା' ଭଲରହୁନି । ଦିନେ ଏକାଥରକେ ଦୁଇଝିଅଙ୍କ ଦେହ ଖରାପ ହେଲା । ଓଷଦ କରିବାରେ ପଇସା ପାଣି ପରି ଖରଚ ହେଲା । ସେ ମାସରେ ରାମୁ ସାଉକାରର ପଇସା ଦେଇପାରିଲାନି ।

ରାମୁ ଭାବିଥିଲା ଅଧିକ ଖଟିବ । ମାଛଧରି ଲାଭ ପଇସାରେ ଧୀରେ ଧୀରେ ଗୋଟିଏ ଫଟଫଟିଆ ନାଆ କିଣିବ । ତାହେଲେ ତା'ର ପୁଣି





ଅଧିକ  ମାଛ ଆସିବ ।''

ହେଲେ ସବୁ ଓଲଟା ହେଲା । ଯୋଉ ସାଉକାରଠୁ କରଜ ଆଣି ନାଆ ଆଉ ଜାଲ ଆଣିଥିଲା ସେ ଛାଡ଼ିବା ଲୋକ ନୁହଁ । ରୋକଠୋକ କହିଲା, ''ଆର ମାସକୁ ଦୁଇମାସର ପଇସା ପଇଠ ନକଲେ ନାଆ ଆଉ ଜାଲ ନେଇଯିବି । ଯେମିତି ବି ହେଉ ମୋ ପଇସା ଶୁଝିଦେ । ନହେଲେ କିଛି ଭଲ ହବନି ।''

## 4

ରାମୁ ତା'ର ନାଆ ନେଇ ସମୁଦ୍ର ଭିତରେ ମାଛ ଖୋଜି ହତାଶ ହୁଏ। ଆଗରୁ ଥରକେ ଶହେ ଦେଢ଼ଶହ କିଲୋ ମାଛ ପଡୁଥିଲେ। ଏବେ ଦଶକିଲୋ ହେଲେ ବହୁତ। କଙ୍କଡ଼ା ତ ଆଉ ଦେଖିବାକୁ ବି ମିଳୁନି।

ଦିନକୁ ଦିନ ଅଭାବ ମାଡ଼ି ଆସୁଛି। ଦୁଇଓଳି ଦୁଇମୁଠା ପେଟପୁରା ଖାଇବାକୁ ବି ମିଳୁନି। ସାଉକାରର କରଜ ଶୁଝାହେବ କିମିତି ?

ରାତିରେ ଆଉ ନିଦ ହେଉନି ରାମୁକୁ। ହେଁସ ଉପରେ ପଡ଼ିରହି ରୋଗିଣା ପିଲା ଦି'ଟାଙ୍କୁ ବିକଳରେ ଚାହିଁ ରହୁଛି। ଆକାଶ ପାତାଳ କେତେକଥା ଭାବୁଛି।

ତା' ଦୁଃଖ ସେତିକିରେ ସରିଲା ନାହିଁ। ଦିନେ ଶୁଣିଲା ବଜାରରେ କେହି ମାଛ କିଣୁନାହାନ୍ତି। ବୁଟୁବୁଟୁ ଜାଣିଲା ମାଛ ଦେହରେ କ'ଣ ରୋଗ ହେଇଛି। ନଈ, ପୋଖରୀ ଆଉ ଚିଲିକା ମାଛ ସବୁଠି ସେଇ ରୋଗ। ମାଛ ଦେହରେ ଠାଏ ଠାଏ କାତି ଛାଡ଼ି ନାଲିଆ ଦିଶୁଛି। ପକ୍ଷୀ ଓ ଲାଞ୍ଜ ଛିଣ୍ଡା ଛିଣ୍ଡା ଦିଶୁଚି।

ଚାହୁଁ ଚାହୁଁ କଥାଟା ଚାରିଆଡ଼େ ଖେଳିଗଲା। ସହରଠାରୁ ଗାଁ ଗହଳି ଯାଏଁ ସଭିଏଁ ଜାଣିଲେ। ଫଳରେ ବଜାରରେ ଲୋକେ ଆଉ ମାଛ କିଣିଲେନି।

ବିପଦ ଆସିଲା ବେଳେ ଏମିତି ଆସେ। ମାଛ ଦେହରେ ଘା' ଘଉଡ଼ କଥା କାନ ଉଠିବାଦିନୁ ଶୁଣାନଥିଲା। କୋଉ କାଳରୁ ତାଙ୍କ କେଉଟ କୂଳ ସମୁଦ୍ରର ମାଲିକ ହୋଇଥିଲେ। ଏବେତ ଆଉ ସେ କଥା ନାହିଁ।

ବାବୁଭାୟାମାନେ ସମୁଦ୍ରକୁ ଆଖେଇଲେଣି । ଟ୍ରଲର ପକାଇ ଏତେବଡ଼ ସମୁଦ୍ରଟାକୁ ସାଉଁଟି ପକଉଚନ୍ତି । ଅତି ସରୁ ଜାଲ ପକେଇ ମାଛ ଜାଆଁଳରୁ ନେଇ କଙ୍କଡ଼ା ଡିମ୍ବଯାଏଁ କିଛି ଛାଡୁନାହାନ୍ତି । ତଳମାଟି ଉପରମାଟି କରି ଦଉଛନ୍ତି ।

ବେଳେବେଳେ ରାମୁ ପାଠପଢ଼ା ଲୋକଙ୍କ ସହିତ କଥାହୁଏ । ସେମାନଙ୍କଠଉ ଶୁଣେ ଆଜିକାଲି ସମୁଦ୍ର ପାଣି ଖରାପ ହେଲାଣି ।

କଳକାରଖାନା ଚାରିଆଡ଼େ ବସୁଛି । ତା'ର ଯେତେ ମଇଳା ଆଉ ବିଷପାଣି ନଈବାଟେ ଆସି ସମୁଦ୍ରରେ ପଡୁଛି । ସବୁଦିନେ ବଡ଼ ବଡ଼ ଜାହାଜରୁ କେତେ ପେଟ୍ରୋଲ୍ ଆଉ ଡିଜେଲ ପାଣିରେ ମିଶୁଛି ।

ରାମୁ ଶୁଣିଛି, ପାରଦ, ସୀସା ଆଉ କେତେ ପ୍ରକାରର ବିଷଭଳି



ଜିନିଷ ସମୁଦ୍ରପାଣିରେ ପ୍ରତିଦିନ ମିଶୁଛି ।

ମଶା ମାରିବାଠାରୁ ଧାନ କିଆରୀରେ ପୋକ ମାରିବା ପାଇଁ ଲୋକେ ଡିଡିଟି ପକଉଛନ୍ତି । ସେ ସବୁ ଶେଷରେ ଧୋଇହୋଇ ସମୁଦ୍ରକୁ ଆସୁଛି । ଆଜିଯାଏଁ ଏମିତି ଯେତେକ ବିଷାକ୍ତ ଜିନିଷ ବ୍ୟବହାର ହେଲାଣି ସବୁ ସମୁଦ୍ର ଭିତରକୁ ଆସିଛି । ଏସବୁ ସମୁଦ୍ର ଭିତରେ ପଶୁଚି ସିନା କିଛି ବାହାରି ପାରୁନି । ଫଳରେ ସମୁଦ୍ରର ନେଳି ଜାତିର ଛୋଟ ଛୋଟ ଜୀବ ମରି ଯାଉଛନ୍ତି । ସେଗୁଡ଼ାକ ମରିଗଲେ ମାଛ ପୁଣି ଖାଇବ କ'ଣ ? ବଢ଼ିବ କିମିତି ?

ଆଉ ଥରେ ଜଣେ ବାବୁ କହୁଥିଲେ ଯେ, ଧନୀଦେଶମାନେ ସମୁଦ୍ରକୁ ଖତଗଦା ପରି ମନେ କରୁଛନ୍ତି । ତାଙ୍କ ଦେଶର ଯେତେସବୁ ଅଦରକାରୀ ଜିନିଷକୁ ସମୁଦ୍ରରେ ପକଉଛନ୍ତି । ବଡ଼ବୋମା ବି ସମୁଦ୍ର ଭିତରେ ପରୀକ୍ଷା ହେଉଛି ।

ରାମୁ ଭାବନାର ଶେଷ ନାହିଁ । ପେଟରେ ଭୋକ । ପାଣି ଗିଲାସେ ପିଇ ହେଁସ ଉପରେ ଗଡ଼ିପଡ଼ିଲା ।

# 5

ପେଟରେ ଭୋକ । ମନରେ ଅନେକ ଭାବନା । ଆଖିକି ନିଦ ଆସୁନି । କୁଡ଼ିଆ ଦୁଆରେ ହେଁସ ଉପରେ ପଡ଼ି ରାମୁ ଛଟପଟ ହେଉଛି ।

ଅଧରାତି ସରିକି ସୁଲୁସୁଲିଆ ପବନରେ ଟିକିଏ ଛାଇନିଦ ଲାଗିଗଲା । ସେତିକିବେଳକୁ ରାମୁ ଗୋଟେ ଡ଼ର ସପନ ଦେଖିଲା ।

ସେ ସପନରେ ଦେଖିଲା —

ନାଆ ନେଇ ମଝିଦରିଆକୁ ଚାଲିଯାଇଛି । ହେଲେ ମଝିଦରିଆର ଥିର ନୀଳ ପାଣି ନାହିଁ । ସମୁଦ୍ରର ରୂପ ଆଜି ବଦଳିଯାଇଛି । ପାଣିର ରଙ୍ଗ କୋଇଲା ପରି କଳା ଦିଶୁଛି ।

ସମୁଦ୍ରରେ ଝଡ଼ ଉଠିଛି । ବତାସିଆ ପବନରେ ଗଛ ଉଚ୍ଚର ଲହଡ଼ି ଉଠୁଛି । ଆଉ ଲହଡ଼ି ଭିତରୁ ମାଛ ଗୁଡ଼ାକ ଝରି ପଡୁଛନ୍ତି । ମାଛଗୁଡ଼ାକ ରୋଗୀଣା ଦିଶୁଛନ୍ତି ।

ମାଛକୁ ଏମିତି ଛଟପଟ ହେଉଥିବାର ଦେଖି ରାମୁ ଡେଇଁ ପଡ଼ିଲା ସେଇ ଗାତ ଭିତରକୁ ।

ବାସ୍, ସେତିକି ବେଳକୁ ଚାଉଁକିନା ତା ନିଦଟା ଭାଙ୍ଗିଗଲା । ହେଁସ ଉପରୁ ଉଠିଲା ବେଳକୁ ତା ଦେହ ଝାଳରେ ବୁଡ଼ିଯାଇଥାଏ ।

ରାମୁ ଧାଇଁଯାଇ ସାଇପଡ଼ିଶା ସଭିଙ୍କୁ ନିଦରୁ ଉଠାଇଲା । ସମସ୍ତଙ୍କୁ ତା' ସପନ କଥା କହିଲା । ସମସ୍ତଙ୍କୁ ପଚାରିଲା ସମୁଦ୍ର ପାଣିର ରଙ୍ଗ କାହିଁକି କଳା ହୋଇଗଲା ? ମାଛ ଗୁଡ଼ାକ ରୋଗୀଣା କାହିଁକି ହେଲେ ?

ରାମୁର କଥା ଶୁଣି କିଏ କହିଲା, ''ଏଇଟା ପାଗଳା ହୋଇଗଲା ।''

ଆଉ କିଏ କହିଲା, ରାମୁ ମଦ ପିଇ ବାଉଳି ହଉଚି । ପୁନେୟା କହିଲା, ''ତାକୁ ଭୂତ କି ପିଶାଚ ଲାଗିଚି ।''

ରାମୁ ସଭିଙ୍କ କଥା ଶୁଣିଲା । କେହି ତା'କଥାରେ ଉତ୍ତର ଦେଲେନି । ତା' ମନ ଭିତରର ଝଡ଼ ଆହୁରି ବଢ଼ିଲା ।

ସଭିଏଁ ଫେରିଗଲେ । ନିଜ ନିଜ ହେଁସ ଉପରେ ପୁଣି ସେମାନେ ଶୋଇଗଲେ । ସମୁଦ୍ରର ପାଣି କଳା ହେଉ ବା ଯାହାହେଉ ସେମାନଙ୍କର ଯାଏଆସେ ନାହିଁ ।

ରାମୁ ବି ନିଜ ପତର କୁଡ଼ିଆ ଭିତରକୁ ଗଲା । ପାରବତୀ, କାଳୀ ଓ କନକଙ୍କୁ ଶୁଆଇ ଦେଲା ସେମାନଙ୍କ ଯାଗାରେ । ତା'ର ନିଜ ଆଖିରେ ଆଉ ନିଦନାହିଁ । ବାଲି ଉପରେ ପଡ଼ିରହି ଖୋଲା ଆକାଶକୁ ତବତବ କରି ଚାହିଁ ରହିଲା ।

ଆରଦିନ ସକାଳ ପାହିଲା ।

ନୋଳିଆ ସାହିରେ ରାମୁ ମିଳିଲାନି । କାଳୀ, କନକ ଆଉ ପାରବତୀ କେତେ ଖୋଜିଲେ ।

ରଘୁ ବେହେରାକୁ ଖବର ପଠାହେଲା । ରାମୁକୁ କେହି ଖୋଜି ପାଇଲେନି । କୁଆଡ଼େ ଉଭେଇ ଗଲା ଏତେ ବଡ଼ ମଣିଷଟା !



# 6

କିଛିଦିନ ବିତିଗଲା । ଦିନେ ସକାଳ ପହରୁ ରଘୁ ବେହେରା ଦୁଆର ଖଡ଼ଖଡ଼ ହେଲା । ରଘୁ ଦୁଆର ଖୋଲିଲା । ଦେଖିଲା ଆଗରେ ରାମୁ ଠିଆ ହେଇଛି ।

ତା' ମୁହଁରେ ଅନାବନା ଦାଢ଼ୀ । ମଥାରେ ନୁଖୁରା ବାଳ । ଦେହରେ ଚିରା ଲୁଗା ।

ନିଜ ଆଖିକୁ ରଘୁ ପରତେ ଗଲାନି । ରାମୁ ବାପକୁ ଦେଖି କାନ୍ଦି ପକାଇଲା । ରଘୁ ବି ଲୁହ ଢାଳିଲା । ପଛକୁ ପଛ ତା' ଭାଇ ଭଉଣୀ ଆସି ବାପ ସହିତ ମିଶିଗଲେ ।

ଏତେ ଦିନକେ ବାପପୁଅ ଏକାଠି ହେଇଛନ୍ତି । କେତେ ଗପ ହେଲା । ସମୁଦ୍ର ଆଉ ଚିଲିକା ବିଷୟରେ ରାମୁ କେତେକଥା କହିଲା । ତା'ର ସପନ କଥା ଆଉ ଲୋକମାନଙ୍କ ଠାରୁ ଶୁଣିଥିବା କଥା ସବୁ ବାପକୁ ଶୁଣାଇଲା ।

କେତେଜଣ ଗାଁ ଲୋକ ଆସିଲେ । ବଡ଼ମାନଙ୍କୁ ରାମୁ ଜୁହାର କଲା । ବାପ ପୁଅଙ୍କୁ ଏକାଠି ଦେଖି କେତେକ ଖୁସି ହେଲେ । ଆଉ କେତେକ କ'ଣ କ'ଣ ଫୁସୁରୁ ଫାସୁରୁ ହେଲେ ।

ଗହଳି ଭିତରୁ ଜଣେ କହିଲା, ରାମୁ ଯଦି ଗାଁରେ ରହିବ ତେବେ ସେମାନଙ୍କୁ ନିଆଁ ପାଣି ବାସନ୍ଦ କରାହେବ ।

କଥାଟା ରଘୁ ବେହେରାକୁ ବାଧିଲା । ରାମୁ ବି ସହିପାରିଲାନି । ସାଙ୍ଗେ ସାଙ୍ଗେ କହିଲା, ''ମୋତେ କ'ଣ ଭାବିଲକି ? ମୁଁ ସବୁଦିନ ପାଇଁ ଏଘର

ଆଉ ଗାଁ ଛାଡ଼ିଛି । ଏବେ ମୋ ଘର ପୁରୀରେ । ଏଠି ମୁଁ କାହିଁକି ରହିବି ? ଖାଲି ତୁମମାନଙ୍କ ସହିତ ଦୁଇପଦ କଥାଭାଷା ହୋଇ ମୁଁ ଫେରିଯିବି ।''

ଦନେଇ ବେହେରା ମାଛ ମାରିବାକୁ ଯାଉଥିଲା । ଗହଳିଦେଖି ଇଆଡ଼କୁ ଟିକିଏ ଆସିଲା । ସେ କହିଲା— ''ତୁ ତ ଗାଁ ଛାଡ଼ିଲୁ । ପୁଣି ଆମସାଙ୍ଗରେ କଥାଭାଷା ହବା କି ଦରକାର ?''

ରାମୁ କହିଲା, ''ଦନେଇ କକା, ମୁଁ ନିଜ ପାଇଁ କିଛି କହୁନି । ମୋତେ ଲାଗୁଛି ଆମ କେଉଟ କୂଳ ଉପରେ ବିପଦ ମାଡ଼ି ଆସୁଛି । ସେଥିପାଇଁ ମୁଁ ତୁମମାନଙ୍କୁ ହୁସିଆର କରିଦେବାକୁ ଆସିଛି ।''

ଦନେଇ ମନକୁ କଥାଟା ଜମା ପାଇଲାନି । ଛିଗୁଲେଇ କହିଲା, ''ହଉ ତୁ ହୁସିଆର କରୁଥା । ମୁଁ ଯାଉଛି । ସଅଳ ନଗଲେ ପୁଣି ଖରା ମାଡ଼ିଆସିବ !''

ରାମୁ କହିଲା — ''କକା, ଟିକିଏ ଶୁଣିଦେଇ ଯାଅ । ସେଇ ସମୁଦ୍ର କଥା ମୁଁ କହୁଛି । ଯେଉଁଠୁ ଆମେ ମାଛ ଠାରୁ ମୋତିଯାଏଁ, ପାଣିଠାରୁ ଲୁଣଯାଏଁ ସବୁ ପାଉଛେ — ତା' କଥା ଟିକିଏ ଶୁଣ । ସେ ଆଜି କାନ୍ଦୁଛି । ତା'କଥା ଟିକିଏ ଭାବ ।''

ଦନେଇ ଚାଲିଗଲା । ରାମୁ କଥାକୁ ସେ ହସରେ ଉଡ଼େଇ ଦେଲା ।

ଆଉ ଯେଉଁମାନେ ରହିଲେ ସେମାନଙ୍କୁ ବିକଳରେ ଚାହିଁଲା ରାମୁ । ତା' ଆଖିରୁ ଦି' ଧାର ଲୁହ ଗଡ଼ିପଡ଼ିଲା ।

ସେଇ ଗାଁର ଯୁବକ ବିନ । ରାମୁ କଥା ତାକୁ ଭଲ ଲାଗିଲା । ସେ ଦିଅକ୍ଷର ପାଠ ବି ପଢ଼ିଛି । ରାମୁଠାରୁ ଆଉ ଦୁଇକଥା ଜାଣିବା ପାଇଁ ମନକଲା ।

ରାମୁ କହିଲା, ''ସମୁଦ୍ର ମା' । ଆମେ ସଭିଏଁ ତା'ର ଛୁଆ । ମା'ତ ପୁଅଝିଅଙ୍କ ପାଇଁ ସବୁ କରେ । ପୁଅ ବି ମା' ପାଇଁ ତ କିଛି କରିବା କଥା ।

ଏଥର ସଭିଏଁ ରାମୁକୁ ଚାହିଁଲେ। ତା ପାଟିରୁ ଦୁଇପଦ କଥା ଶୁଣିବା ପାଇଁ ସଭିଙ୍କ ମନ।

ରଘୁ ବେହେରା ଦିନେ ଭାବିଥିଲା ତା' ପୁଅକୁ ବଡ଼ ମଣିଷ କରିବ। ରାମୁ ଆଜି ତା ଆଗରେ ଠିଆ ହେଇଛି। ଦେହରେ ଚିରା ଲୁଗା। ମଥାରେ ନୁଖୁରା ବାଳ। ହେଲେ ତା ଭଳି ବଡ଼ ମଣିଷ ପୁଣି କିଏ ବା ଅଛି ? ସମୁଦ୍ର କଥା ଆଜିଯାଏଁ କେହି ତ ଭାବୁନଥିଲେ। ପହିଲେ ସେ କଥା ରାମୁ ମଥାରେ ପଶିଛି।

ଗାଁ ବାଲାଙ୍କୁ ରଘୁ କହିଲା, ''ଭାଇମାନେ ସମୁଦ୍ରର ଦୁଃଖ କଥା ଶୁଣିବ



ଯଦି, କୋଠଘରଠିକି ସଭିଏଁ ଆସ। ସେଇଠି ବସିବା। କଥାଭାଷା ହେବା।''

ଗାଁ ଲୋକେ ଏକଯୁଟ ହେଲେ। ମାଣିକ ପାଟଣାର ଦହି ଅଣାଗଲା। ରଘୁ ସମସ୍ତଙ୍କୁ ପତର ଦନାରେ ଦହି ପରଷିଲା। ରାମୁ ବି ଖାଇଲା। କୋଠଘର ଆଗରେ ଗୋଟେ ବଡ଼ ପଥର ଥାଏ। ତା ନାଁ ନିଶାପ ପଥର। ଗାଁର ମୁଖିଆ ତା'ରି ଉପରେ ବସି ନିଶାପ ଶୁଣାଏ। ରଘୁ ଗୋଡ଼ହାତ ଧୋଇ ପଥର ଉପରେ ବସିଲା।



# 7

ଦହିଖିଆ ସରିଲା । ଗାଁ ବାଲାଙ୍କ ଆଗରେ ରାମୁ ତା'ର ସପନକଥା ଗୋଟି ଗୋଟି କହିଲା ।

ଯଦୁ ଦାସ ରାମୁ କଥା ବୁଝିପାରିଲାନି । ସେ କହିଲା, ''କିରେ ସପନ କ'ଣ କେବେ ସତ ହୁଏ ? ସପନ ଦେଖି ଏମିତି ବେସ୍ତ ହେବା କି ଦରକାର ?''

ରଘୁ ଦେଖିଲା, କଥାଟା ଭିନେ ଆଡ଼କୁ ଯାଉଛି । ସେ ପାଟି କରି କହିଲା, ''ନା, ନା, ସପନ ବୋଲି କହି କଥାଟା ଉଡ଼େଇ ଦେଲେ ହବନି । କଥାଟାର ବହୁତ ଓଜନ ଅଛି । ସମୁଦ୍ର ପାଣି କେମିତି ମଇଳା ହଉଛି ସେ କଥା ଆଗ ମନଦେଇ ଶୁଣ । ସେଥିପାଇଁ ଏବଠୁ ଭାବ । ନହେଲେ ଶେଷକୁ ନିଶ୍ଚେ ପ୍ରଳୟ ହେବ । ଦୁନିଆ ଭାସିଯିବ ।''

ଶୁକୁଟା ମଳିକ ଖଇନି ଟିକିଏ ପାଟିରେ ପକେଇବାକୁ ଯାଉଥିଲା । ପ୍ରଳୟ କଥାଟା ଶୁଣି ତା' ଆଁଟା ସେମିତି ମେଲା ରହିଗଲା ।

ରାମୁ କହିଲା, ''ଏଇ ଗୋଟିଏ କଥା ଦେଖ । ଆଜିକାଲି ସହର ବଜାରରେ କେତେ ଗାଡ଼ି ମଟର ଚାଲୁଛି । ପେଟ୍ରୋଲ ଆଉ ଡିଜେଲ ତେଲରେ ସେଗୁଡ଼ା ଚାଲେ । ସେ ତେଲରେ ସୀସା ମିଶିଥାଏ । ଗାଡ଼ି ଚାଲିଲେ ଯେଉଁ ଧୂଆଁ ବାହାରେ ସେଥିରେ ସୀସା ଅଂଶ ଥାଏ । ଧୂଆଁ ଆକାଶକୁ ଯାଏ । ସେଠାରୁ ପୁଣି ବରଷା ଦେହରେ ମିଶି ଭୂଇଁକୁ ଖସେ । ସବା ଶେଷରେ ଆସି ସମୁଦ୍ରରେ ମିଶେ । ସେମିତି ଆଉ ଗୋଟେ ଧାତୁ ଜିନିଷ ହେଉଛି ପାରଦ । ଏଇ ସବୁ ଧାତୁ, ମାଛ ଆଉ ଅନ୍ୟ

ଜୀବ ମାନଙ୍କର ବିଷ ପ୍ରତିଦିନ ସମୁଦ୍ରରେ ଏମିତି ବିଷଗୁଡ଼ାକ ପଶୁଛି । ତା' ପରିମାଣ ଦିନକୁ ଦିନ ବଢ଼ିଚାଲିଛି । ଦିନ ଆସିବ ଯେତେବେଳେ ଏଇ ବିଷ ଅଂଶ ସମୁଦ୍ର ପାଣିରେ ଏତେ ବେଶୀ ହେଇଯିବ ଯେ ଆଉ କଉଣସି ଜୀବ ଏଠି ବଞ୍ଚିପାରିବନି ।''

ହଟିଆ ଦଳେଇ କହିଲା, ''ରାମୁ ଯାହା କହୁଚି ଠିକ୍ କଥା । ଏବେ ଚିଲିକା କଥା ଦେଖୁନ । ଦୟା ନଈ ଆଉ ଶାଳିଆ କୂଳରେ କେତେ ସହର ବଜାର ଆଉ କଳକାରଖାନା ହେଲାଣି । ସେଥିରୁ ବିଷାକ୍ତ ପାଣି ନଈବାଟେ ଆସି ଚିଲିକାରେ ମିଶିଲା । ଖାସ୍ ସେଥିପାଇଁ ଏବେ ଚିଲିକାରେ ମାଛ କମିଗଲାଣି ।''

ହଟିଆ ସହିତ ନଟିଆ ବି ମିଶିଗଲା । ସେ କହିଲା, ''ଗଙ୍ଗାନଦୀ କଥା ଶୁଣିଛଟି । କେଡ଼େ ବଡ଼ ନଈ । ଏବେ ତା' ପାଣି ପଚାସଢ଼ା ହେଲାଣି । ସରକାର ଏବେ ସେଥିରୁ ପଙ୍କ ଆଉ ବିଷପାଣି ବାହାର କରୁଛନ୍ତି । ନଈନାଳପରେ ଏବେ ଚିଲିକାର ପାଳି ପଡ଼ିବ । ହେଲେ ତାକୁ ତ ଆଉ ସରକାର ସଫା କରିପାରିବନି ।''

ଗାଁର ସଭିଏଁ କଥାଟା ବୁଝିଗଲେ । ନଟିଆ ମୁହଁରୁ ରାମୁ କଥା ଛଡ଼େଇ ନେଲା । ସମୁଦ୍ରର ପାଳି ପଡ଼ି ସାରିଲାଣି । ସମୁଦ୍ରରେ ନିଇତି ଯେତିକି ଟ୍ରଲର ମଟର ବୋଟ ଆଉ ବଡ଼ ବଡ଼ ପାଣି ଜାହାଜ ଚାଲିଛି ତା'ର ହିସାବ ନାହିଁ । ସେଥିରୁ ଯୋଉ ତେଲ ଝରୁଛି ସେ ସବୁ ସମୁଦ୍ର ପାଣିରେ ଭାସେ । ପାଣିକୁ ବିଷାକ୍ତ କରେ । ସେଇଥିଲାଗି ଏବେ ଠାଏ ଠାଏ ସମୁଦ୍ର କୂଳରେ କଳା ପଙ୍କ ଆଉ ବାଲି ଜମା ହେଲାଣି ।

ବିନ ମନଦେଇ ସଭିଙ୍କ କଥା ଶୁଣୁଥିଲା । ଜଣେ ହାକିମଙ୍କଠାରୁ ସେ ଶୁଣିଥିବା କଥା ମନେ ପଡ଼ିଗଲା । ଏବେ ପରା ସମୁଦ୍ରଭିତରେ ବୋମା

ପରୀକ୍ଷା ହେଉଛି । ଏଗୁଡ଼ାକ ତ ବହୁତ କ୍ଷତି କରୁଥିବ ?

ବିନ କଥାରେ ରାମୁ କହିଲା, "ସରଗକୁ ନିଶୁଣି ନାଇଁ କି ଧନୀ ଲୋକଙ୍କୁ ଉତ୍ତର ନାଇଁ । ଧନୀ ଦେଶଗୁଡ଼ାକ ସମୁଦ୍ରକୁ ଗୋଟାଏ ଖତଗଦା କି ମଇଳା ଗାତ ବୋଲି ମନେକରିଛନ୍ତି ।

ଏଇ ଗଲାବରଷ ଦି'ଟା ଦେଶ ଭିତରେ ଯୁଦ୍ଧ ହେଲା । ଦି'ଟା ଯାକ ଦେଶ ସମୁଦ୍ର କୂଳିଆ । ଦି'ଟାଯାକ ଦେଶ ତେଲ ବେପାର କରନ୍ତି । ତାଙ୍କ ଦେଶର ପଇସା ବେଶୀ । ହେଲେ ସେଠି ପିଇବାକୁ ପାଣି ଟୋପାଏ ନାହିଁ । ଆମର ଏଠି କୂଅ ଖୋଳିଲେ ଯେମିତି ପାଣି ବାହାରେ, ତାଙ୍କ ଦେଶରେ ଯୋଉଠି ଖୋଳିଲେ ଖାଲି ତେଲ । ସେଥିପାଇଁ ସେମାନେ କଳ ସାହାଯ୍ୟରେ ଆଗ ସମୁଦ୍ର ପାଣିରୁ ଲୁଣ ବାହାର କରିନିଅନ୍ତି । ତା'ପରେ ସେଇ ପାଣିକି ପିଅନ୍ତି । ଯୁଦ୍ଧ ଲାଗିଲା ପରେ ଗୋଟାଏ ଦେଶ ଜାଣିଶୁଣି ସମୁଦ୍ର ଭିତରକୁ ନଈ ସୁଅପରି ତେଲ ଛାଡ଼ିଦେଲା । ହଜାର ହଜାର ମାଇଲଧରି ତେଲ ପାଣି ଉପରେ ଭାସିଲା ।

ବିନ ଉଠିପଡ଼ି କହିଲା, "ସେ ଦେଶ ଗୁଡ଼ାକ ଏଡ଼େ ଧନୀ । ଲୋକଗୁଡ଼ାକ ତ ମୁରୁଖ ନୁହଁ । ତାହେଲେ ସାରା ଦୁନିଆକୁ କ୍ଷତି କଲାଭଳି କାମ କେମିତି କଲେ ?"

ରାମୁ କହିଲା, "ସେଇଥିଲାଗି ତ ଆଜି ସମୁଦ୍ର କାନ୍ଦୁଛି ।

ସେ'ତ ସଭିଙ୍କ ମାଆ । କେତେ ଆଉ ସହିପାରିବ ?"



## ୪

ସପନ ଦେଖିଲା ଦିନଠାରୁ ରାମୁ ମନ ଭଲ ନଥିଲା । ସମୁଦ୍ରର ଦୁଃଖକାହାଣୀ ଭଲକରି ଜାଣିଲା । ଅନେକ ଲୋକଙ୍କୁ ପଚାରି ବୁଝିଲା । ଶେଷରେ ତା'ରି ଜାତିଭାଇଙ୍କ ସହିତ ସମୁଦ୍ର ବିଷୟ କଥାଭାଷା ହେବାପାଇଁ ଗାଁକୁ ଆସିଲା ।

ସେଦିନ ନିଶାପ ପଥର ଉପରେ ବସି ରଘୁ ସଭିଙ୍କ କଥା ଶୁଣୁଥିଲା । ଏବେ ସଭିଏଁ ସମୁଦ୍ର କଥା ଟିକିଏ ଭାବିଲେଣି । ରଘୁ ମନେ ମନେ ଖୁସି ହେଲା ।

ଏଇ ରାଇଜର ଗୋପାଳପୁରଠୁ ଚାନ୍ଦବାଲି ଯାଏଁ କେତେ ବନ୍ଦର ଥିଲା । ଏଇଠୁ ନିଇତି ସାଧବ ପୁଅ ବୋଇତ ନେଇ ଦେଶ ବିଦେଶକୁ ଯାଉଥିଲା । ବଣିଜକରି ଆମରାଇଜକୁ ମୋତି ମାଣିକ ବୋହି ଆଣୁଥିଲା । ସେଦିନ କେଡ଼େ ଧନୀଥିଲା ଏଇରାଇଜ । ବଡ଼ ଦେଉଳ ଆଉ କୋଣାରକ ପରି ଦେଉଳ ତା'ର ସାକ୍ଷୀ ହୋଇ ରହିଛି । ହେଲେ ଆଜି ସେ ବନ୍ଦର ନାଇଁ କି ସେ ଧନ ଗଉରବ ନାଇଁ ।

ଦିନକ ଭିତରେ ତ ସେଗୁଡ଼ା ପୋତିହୋଇ ଯାଇନି । ବରଷ ବରଷ ଧରି ମଣିଷ ବେପରୁଆ ହେବାରୁ କୋଉଟା ପୋତି ହେଇଗଲା ତ କୋଉଟା ଭାଙ୍ଗି ରୁଜି ଗଲା ।

ବନ୍ଦର ସହିତ ଧନ ଗଉରବ ସବୁ ଗଲା । ତଥାପି ମଣିଷର ନିଦ ଭାଜୁନି । ଆଜି ବି ସମୁଦ୍ରକୁ ହତାଦର କରୁଚି । ଶେଷରେ ରଘୁ କହିଲା, "ମୋ ପିଲାଦିନେ ଆମ ଗାଁରେ ଯେତିକି ଲୋକ ଥିଲେ ଏବେ ତା'ର

ଚାରିଗୁଣା ହେଲେଣି । ଲୋକ ସିନା ବଢ଼ିଲେ, ଯାଗାତ ବଢୁନି । ଆମର ଯେତେସବୁ ମଇଳା ଆମେ ଛାଡୁଛେ ସବୁତ ଶେଷରେ ମାଟି, ନଈ ହୋଇ ସମୁଦ୍ରରେ ମିଶୁଛି । ଆଉ ସବୁ ଦେଶରେ ବି ସେମିତି ଲୋକ ବଢ଼ିଛନ୍ତି । ମଇଳା ବଢ଼ିଛି । ସବୁ ଆସି ସେଇ ସମୁଦ୍ରରେ ପଡୁଛି ।''

ଦାମ ଦଳେଇ କହିଲା, ''ଚିଲିକା ପାଣିରେ ଏଇ ମଇଳା ଆଉ ବିଷାକ୍ତ ପାଣି ମିଶିବାରୁ ତା' ପାଣି ଖରାପ ହେଲା, ମାଛ କମିଲେ । ସେଥିପାଇଁ ରାମୁପରି ଅନେକ ଲୋକ ଚିଲିକା ଛାଡ଼ି ସମୁଦ୍ରକୁ ଭରଷା କରିଥିଲେ । ଏବେ ସମୁଦ୍ରରୁ ମାଛ ନପାଇଲେ ପୁଣି ସେମାନେ କୁଆଡ଼େ ଯିବେ ?''



ରଘୁ କହିଲା, ''ଖାଲି ରାମ ନୁହେଁ କି କେଉଟ କୁଳ ନୁହେଁ, ଏଇଟା ସାରା ମଣିଷ ଜାତିର ଭାବନା ହେଲାଣି ପରା ।

ପିଇବା ପାଣିଠୁ ନେଇ ଖାଇବା ଲୁଣ ଯାଏଁ ସବୁ ଆମେ ସମୁଦ୍ରରୁ ପାଉ । ଏବେ ସମୁଦ୍ର ବିଷଗୁଡ଼ାକ ହଜମ କରି ହେଉଛି । ହେଲେ ବିଷ ପରିମାଣ ଆଉକିଛି ବଳେଇ ପଡ଼ିଲେ କ'ଣ ହେବ ଜାଣିଛଟି ? ସମୁଦ୍ରରୁ ବାଷ୍ପ ହୋଇ ପାଣି ମେଘକୁ ଯିବ । ସେଥିରୁ ଯେତେବେଳେ ବରଷା ହେବ ଖାଲି ବିଷ ଝରିବ । ସେତେବେଳକୁ ପିଇବାକୁ ଆଉ ପାଣି ଟୋପାଏ ମିଳିବନି ।''

ଶୁକୁଟା ଡରି କରି ପଚାରିଲା, ''ରଘୁଭାଇ କ'ଣ ସତରେ ପ୍ରଳୟ ହୋଇଯିବ ?''

ରଘୁ ଥୟ ଦେଇ କହିଲା, ''ସମୁଦ୍ର ସଭିଙ୍କ ମାଆ । ସେ ପ୍ରଳୟ ଚାହେଁନି । ସଭିଙ୍କ ମଙ୍ଗଳ ଚାହେଁ । ସେଥିପାଇଁ ସେ ରାମୁକୁ ସପନରେ ଦେଖାଦେଇ ଗୁହାରୀ କରିଛି । ବେଳଥାଉ ଯଦି ସଭିଏଁ ହୁସିଆର ହେବେ ତାହେଲେ ପ୍ରଳୟ କାହିଁକି ହେବ ?''

ରାମୁ ଗାଁ ଲୋକଙ୍କୁ ଚାହିଁଲା । ସପନ ଦେଖିଲା ଦିନଠାରୁ ବିକଳ ହେଉଥିଲା । ତାକୁ ଖୁବ୍ ଏକୁଟିଆ ଲାଗୁଥିଲା । ହେଲେ ଆଜି ସେ ଏକୁଟିଆ ନଥିଲା । ତା' ସାଙ୍ଗରେ ଅନେକ ଲୋକ ଥିଲେ । ସମସ୍ତେ ସମୁଦ୍ର କଷଣ ବୁଝୁଥିଲେ ।

ରାମୁର ମନଟା ହାଲୁକା ଲାଗିଲା । କାଳୀ, କନକ ଓ ପାରବତୀ ମନେପଡ଼ିଲେ ।

ବାପା, ଭାଇ, ଭଉଣୀ ଆଉ ଗାଁ ବାଲାଙ୍କ ଠାରୁ ରାମୁ ବିଦାକି ମାଗିଲା ।

ସମୁଦ୍ର ଭିଜା ବାଲି ଉପରେ ତା' ପାଦଚିହ୍ନ ପୁରୀ ଦିଗରେ ବଢ଼ିଗଲା ।

